# ଭକ୍ତି ସୁଧା



ପଦ୍ମନାଭ ରଥ

# ଭକ୍ତି ସୁଧା

କବି ପଦ୍ମନାଭ ରଥ
ମନ୍ଦାର ବାଗ ପଡ଼ା , ଭବାନୀ ପାଟଣା
କଳାହାଣ୍ଡି

ଲେଖକ କଳା ପରିଷଦ ଆନୁକୂଲ୍ୟରେ

*ପ୍ରକାଶିକା*
ଶ୍ରୀମତୀ ସ୍ନେହଲତା ମହାପାତ୍ର

*ସଂଗ୍ରାହିକା*
ଶ୍ରୀମତୀ କଳ୍ପନା ରଥ
ଶ୍ରୀମତୀ ସ୍ୱର୍ଣ୍ଣଲତା ରଥ

*ମୁଦ୍ରଣ*
ବିବରଣୀ ପ୍ରକାଶନୀ
ଟଙ୍କପାଣି ରୋଡ଼୍
ଭୁବନେଶ୍ୱର - ୨
ତା - ୧.୧.୨୦୦୩

ମୂଲ୍ୟ - ୫ ଟଙ୍କା

# ଅଭିମତ

ଅନନ୍ତ ସତ୍ତାର ଶାଶ୍ୱତ ରାଜ୍ୟରେ ବଂଶୀର ମଧୁର ଗୁଞ୍ଜନ ଭିତରେ ହଜିଯାଇଥିବା ମୋର ଦେବ ପ୍ରତିମ ଭାଇ ପଦ୍ମନାଭ ରଥ ଥିଲେ ଅଗାଧ କୃଷ୍ଣ ଭକ୍ତିର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ! ସେ ଥିଲେ ସାଧକ ଓ କୃଷ୍ଣ ପ୍ରେମର ପୂଜାରୀ! ସେ ବ୍ରଜମୋହନ ହାଇସ୍କୁଲରେ ଶିକ୍ଷକ ଥିଲେ । ତଥାପି ନିଜ ଜୀବନ ପଥକୁ ସେ କୃଷ୍ଣ ଚେତନା ଭିତରେ ହଜାଇ ଦେଇଥିଲେ ।

ସେ ଜନ୍ମ ଗ୍ରହଣ କରିଥିଲେ କଳାହାଣ୍ଡି ଜିଲ୍ଲାର ଭବାନୀପାଟଣା ସହର ମନ୍ଦାରବାଗପଡ଼ାରେ ୧୯୨୮ ଏପ୍ରିଲ ୪ ତାରିଖରେ । ନନା ବାସୁଦେବ ରଥ ଥିଲେ ରଜାଙ୍କ ରାଜଗୁରୁ, ସାଧକ ଏବଂ ସେ ଥିଲେ ପର ଉପକାରର ଏକ ଚରମ ଦୃଷ୍ଟାନ୍ତ! ଭବାନୀପାଟଣାରେ ତାଙ୍କୁ ଗାନ୍ଧୀ ବୋଲି କହୁଥିଲେ । ଭାଇ ନନାଙ୍କ ଠାରୁ ସାଧନା ଶିକ୍ଷାକରୁଥିଲେ! କିନ୍ତୁ କୃଷ୍ଣ ଭକ୍ତି ଥିଲା ତାଙ୍କର ନିଜସ୍ୱ!! ମୁଁ ଜାଣେ, ନନା କଲ୍ୟାଣ ବହି ସବୁ କିଣି ଭାଇକୁ ନିୟମିତ ପଡିବାକୁ ଦେଉଥିଲେ । ଭାଇ ପଦ୍ମନାଭ ଥିଲେ ମିଷ୍ଟାଭାଷି, ଶାନ୍ତ, ସୌମ୍ୟ । ତାଙ୍କର ଜଣେ ଛାତ୍ର - ଅତାବିରା ଗ୍ରାମର ଓକିଲ ଶ୍ରୀ ସୂର୍ଯ୍ୟକାନ୍ତ ବେହେରା ଥିଲେ ତାଙ୍କର ଶିଷ୍ୟ- ସେ କହନ୍ତି- ମୁଁ ବାର ବର୍ଷର ବାଳକ ଥିଲି- ସାର୍ ମତେ ଜଗାଇ ଦେଇ ତାଙ୍କ ଶରୀର ଛାଡ଼ି କେଉଁଆଡ଼େ ଯାଉଥିଲେ- ପାଣି ଭିତରେ ୨/୩ ଘଣ୍ଟା ମଧ୍ୟ ବୁଡ଼ି ରହି ପରେ ବାହାରୁ ଥିଲେ! ମତେ ଏକଥା କହିବାକୁ ମନା କରିଥିଲେ । ସେ ଏପରି ଏକ ସାଧକ- ଏହା ବହୁ ବର୍ଷ ପରେ ଆମେ ଜାଣି ପାରିଲୁ ।

ଥରେ ଭାଇ ଏକାଦଶୀ ଉପବାସ କରି କୃଷ୍ଣମୂର୍ତ୍ତୀ ଗଢିଲେ! ମୂର୍ତ୍ତୀଟିକୁ ଚିତ୍ର କରି ପୋଷାକ ପିନ୍ଧାଇ, ଗହଣା ମୁକୁଟ ପିନ୍ଧାଇ ଦୋଳିରେ ଝୁଲାଉଥାନ୍ତି- ଦୋଳ ପୂର୍ଣିମାଦିନ । ସେ ବାହାରକୁ ଯାଇଛନ୍ତି - ସାନ ଭାଇ ବୈଦ୍ୟନାଥ ଆସି ଠାକୁରଙ୍କୁ

ଝୁଲାଇଲେ- ଠାକୁର ହଠାତ୍ ପଡ଼ିଗଲେ ଓ ଭାଙ୍ଗିଗଲେ । ମଝିଆ ଭାଇ ବାହାରୁ ଆସି ଦେଖିଲେ ପ୍ରୀୟ୍ କୃଷ୍ଣଙ୍କ ଗଣ୍ଡି ମୁଣ୍ଡ ଅଲଗା ହୋଇ ଯାଇଛି । ଆଖିରୁ ତାଙ୍କର ବହି ଚାଲିଲା ଅଜସ୍ର ଅଶ୍ରୁଧାର!! ପ୍ରାଣର କୃଷ୍ଣ ମୋର ଅଭିମାନ କରି ଚାଲିଗଲେ- ହା କୃଷ୍ଣ ହା କୃଷ୍ଣ ହୋଇ ଭାଇ ଜଙ୍ଗଲକୁ ଚାଲିଗଲେ । ନନା ଭାଇକୁ, ବହୁ ସମୟ୍ ଧରି ଖୋଜିଲାପରେ- ଏକ ଝରଣା କୂଳେ- ପଥର ଗହ୍ୱର ଭିତରେ ଜଳେଶ୍ୱର ଲିଙ୍ଗଙ୍କ ପାଦ ଦେଶରେ ଶୋଇ ପଡ଼ିଥିଲେ- ଚକ୍ଷୁରୁ ଅଜସ୍ର ଅଶ୍ରୁ ଧାର-ପାଖରେ ବାଘ ଜଗି ବସିଛି!! ନନା ହାତୀ ପିଠିରେ ବସି ଦୁର୍ଗମ ଜଙ୍ଗଲ ଭିତରୁ ସିପାହି ମାନଙ୍କ ସାହାଯ୍ୟରେ ଭାଇଙ୍କୁ ଉଠାଇ ଆଣିଲେ !

ବୋଉ ସାବିତ୍ରୀଦେବୀ ଥିଲେ କୃଷ୍ଣଭକ୍ତ । ଭାଇ ଠାକୁର ଘରେ ବୋଉ ସହିତ ବସି ଗିନି ବଜାଇ ହରେ କୃଷ୍ଣ ହରେ ରାମ କହୁଥିବାର ମୋର ମନେ ଅଛି! ବୋଉ ବେଶୀ ପାଠ ପଢିନି କିନ୍ତୁ ଉଚ୍ଚକୋଟିର କବିତା ସେ ଲେଖିପାରୁଥିଲା!

ଭାଇଥିଲେ ଅତ୍ୟନ୍ତ ମାତୃଭକ୍ତ! ନନା ମରିଯିବା ପରେ ସେ ଆମମାନଙ୍କର ସମୁଦାୟ୍ ଦାୟିତ୍ୱ ବହନ କରିଥିଲେ । ଏକାଦଶୀ ଦିନ ବୋଉର ପଦସେବା ସେ ରାତି ସାରା ବସି କରୁଥିବାର ମୋର ମନେ ଅଛି । ତାଙ୍କର ତ୍ୟାଗ ନିଃସ୍ୱାର୍ଥପର ଥିଲା । ନିଜ କଥା ସେ ଭାବୁ ନଥିଲେ । କୃଷ୍ଣ ପ୍ରେମ ହିଁ ତାଙ୍କର ଆଧାରଥିଲା!!

୧୯୫୦ରେ ସେ ପୁରୀର ଏକ ସଂମ୍ଭ୍ରାନ୍ତ ପରିବାରର ଝିଅ ସ୍ୱର୍ଣଲତାଙ୍କୁ ବିବାହ କରିଥିଲେ! ସୁନ୍ଦରୀ, ଗୁଣବତୀ, ସାଧ୍ୱୀ ସ୍ତ୍ରୀ ପାଇ ମଧ୍ୟ ତାଙ୍କର ପାରିବାରିକ ଜୀବନ ଶାନ୍ତିମୟ୍ ହୋଇ ପାରିଲା ନାହିଁ ସର୍ବଦା ହୃଦ ରୋଗରେ ସେ ପୀଡ଼ିତ ଥିଲେ । ଏକମାତ୍ର କନ୍ୟା ୧୪ବର୍ଷର- କଳ୍ପନା ରଥ (ରିନା) କୁ କୋଳରେ ଧରି ସେ କହିବାର ମୁଁ ଶୁଣିଛି- "ମାରେ ମୁଁ ତୋ

ପାଇଁ କିଛି କରିପାରିଲି ନାହିଁ- ମୁଁ ଟିକିଏ ତତେ ମନ ପୂରାଇ ଦେଖି ନିଏଁ। ତୁ ମୋ କୋଳରେ ଏତିକି ଶେଷଥର ପାଇଁ ବସିଥା- ନିରୀହ ଶିଶୁ ମନର ଆଖି ଦୁଇଟି - କେବଳ ଚାହିଁ ରହିଥିଲା- ତାଙ୍କ ମୁହଁକୁ! ମୁଁ ଆଖିରୁ ଲୁହ ପୋଛି କହିଲି- "ଭାଇ ଏମିତି କ'ଣ କହୁଛ ?" ସେ ହସି କହିଲେ- "ଶ୍ୟାମ ଘନର ମୋହନ ମୁରଲୀ ସର୍ବଦା ମୁଁ ଶୁଣି ପାରିଛି! କେତେବେଳେ କାଳିଆ ମୋତେ ଡାକି ନେଇଯିବ"। ପୁରୀରେ ଶାଳକ ଦାମୋଦର ମହାପାତ୍ରଙ୍କ ଘରେ- ୧୯୬୨ ଜାନୁଆରୀ ୨୬ରେ ସେ ଇହଲୀଳା ସମ୍ବରଣ କଲେ।

ଭାଇଙ୍କ ଜୀବନରେ ବହୁ ତଥ୍ୟ ରହସ୍ୟାବୃତ। କୃଷ୍ଣଙ୍କର ନିବିଡ଼ ସାନିଧ୍ୟ ସେ ଅନୁଭବ କରିଥିଲେ। ତାଙ୍କର କବିତାରୁ ଗୋଟିଏ କଳାହାଣ୍ଡି ଭାଷାରେ ଲିଖିତ। ଖପରଘରେ। କବିତାଟି ସମାଜ ତରଫରୁ ପ୍ରକାଶ ପାଇଥିଲା! ଅନ୍ୟାନ୍ୟ ବହୁ କବିତା ଲୁପ୍ତ ହୋଇଯାଇଛି। କେବଳ ତାଙ୍କର ପଦ୍ମନାଭ ଗ୍ରନ୍ଥାବଳୀଟି ରହିଯାଇଛି!

କବିତାଟି ପ୍ରକାଶ କରିବାରେ ଶୁଭେଚ୍ଛୁ ବୃନ୍ଦ ଶ୍ରୀଯୁକ୍ତ ଶିବରାମ ରଥ (ଅବସର ପ୍ରାପ୍ତ ସବ ଜଜ), ସୁବ୍ରତ ମହାପାତ୍ର, ବିଶ୍ୱମୋହନ ରଥ, ବିଧୁପ୍ରଭା ରଥ, ଶଶାଙ୍କ ଶେଖର ମହାପାତ୍ର, ସୁଧାଂସୁ ଶେଖର ମହାପାତ୍ର, ହେମଲତା ମହାପାତ୍ର, ସୌଭାଗ୍ୟ ମିଶ୍ର ପ୍ରଭୃତି ଶୁଭେଚ୍ଛା ଜ୍ଞାପନ କରିଛନ୍ତି। "ଭକ୍ତିସୁଧା କବିତା ଗୁଚ୍ଛଟିରେ ମାତ୍ର କେତୋଟି କବିତା ସଂଗୃହିତ କରି ପ୍ରକାଶ କଲି।

ଆଶା ଏ କବିତା ପାଠକରି ଭକ୍ତବୃନ୍ଦ ଏହାକୁ ଆସ୍ୱାଦନ କରିପାରିଲେ ନିଜକୁ ଧନ୍ୟ ମନେ କରିବି। ସେହି ପରମପୂଜ୍ୟ ପଦ୍ମନାଭ ଭାଇଙ୍କ ପଦତଳେ ଅର୍ଘ୍ୟ ସ୍ୱରୂପ ଏହି ଭକ୍ତି ସୁଧା କବିତାଟି ଅର୍ପଣ କଲି!

ସ୍ନେହଲତା ମହାପାତ୍ର

## ଭକ୍ତି ଅର୍ଘ୍ୟ

ମୋର ପରମ ପୂଜ୍ୟ ପିତୃଦେବ ଶ୍ରୀଯୁକ୍ତ ପଦ୍ମନାଭ ରଥଙ୍କର କବିତା ଗୁଡ଼ିକ ପାଠକରି ତାଙ୍କର ମହାନତା ଉପଲବ୍ଧି କଲି । ତାଙ୍କର କୃଷ୍ଣ ଭକ୍ତି ଉପରେ ଅଫୁରନ୍ତ ଭାବଧାରା ମୋର ମନରେ ଅଶ୍ରୁର ନିର୍ଝରିଣୀ ସୃଷ୍ଟି କରିଥିଲା ।

ଅଭାଗିନି ମୁଁ-ତାଙ୍କର ଏକମାତ୍ର ଅଲିଅଳି ଝିଅ ହୋଇ- ତାଙ୍କର ମୁଖ ମଣ୍ଡଳ ଦେଖିବାର ସୌଭାଗ୍ୟ କେବେ ପାଇଥିଲି ମୋର ମନେ ନାହିଁ । କେତେଦିନ କେତେ ରାତ୍ରି ବିତି ଯାଇଛି- ପିତୃ ସ୍ନେହରୁ ବଞ୍ଚିତ କିମ୍ଭୁତ କିମାକାର ଜୀବନଟା ବହୁ ନିଃସହାୟ ମନେ ହେଉଛି ମତେ! ପିଲା ଦିନେ ଶୂନ୍ୟକୁ ହସ୍ତ ପ୍ରସାରି କାହାର ସାନିଧ୍ୟ ପାଇଁ ମୁଁ ଅସ୍ଥିର ହୋଇ ଉଠେ! ବୋଉର ଧଳା ଶାଢି ପିନ୍ଧିବା- ଏବଂ ବୈଧବ୍ୟ ଜନ୍ତ୍ରଣା ଦେଖି ନନାଙ୍କ ପ୍ରତି ମୋ ମନରେ କେତେ ଅଭିମାନ ଆସିଛି- ମନରେ ଅନେକ ପ୍ରଶ୍ନବାଚୀ? କେତେ ରାତ୍ରି ଅଶ୍ରୁରେ ଭିଜି ଯାଇଛି । ନନାଙ୍କୁ ମୁଁ ଦେଖି ପାରିନି!

ଦୀର୍ଘ ଦିନ ପରେ ମୁଁ ଜାଣି ପାରିଲି ନନା ମୋର ଜଣେ ସାଧକ ଥିଲେ । କେବଳ କୃଷ୍ଣ ଭକ୍ତିର ଏକ ଦୃଷ୍ଟାନ୍ତ ବୋଲି ମୁଁ ଜାଣିଥିଲି । ବହୁ କବିତା ତାଙ୍କର ହଜି ଯାଇଛି! ମାତ୍ର କେତୋଟି କବିତା ମୁଁ ସଂଗ୍ରହ କରିଥିଲି । ପିଇସି ସ୍ନେହଲତାଙ୍କ ପାଖରେ ମଧ୍ୟ କିଛି କବିତା ଥିଲା! ତାଙ୍କ ପାଇଁ ତ ମୁଁ କିଛି କରି ପାରିଲି ନାହିଁ କେବଳ ସେହି ପରମ ପୂଜ୍ୟ ପିତୃଦେବଙ୍କ ଚରଣତଳେ ମୋର ଭକ୍ତି ଅର୍ଘ୍ୟ ଅର୍ପଣ କଲି । ଇତି

ରିନା
କଳ୍ପନା ରଥ

## ଶୁଭେଚ୍ଛା

ପଦ୍ମନାଭ!

ଶାଶ୍ବତ ରାଜ୍ୟର ବହୁ ଉର୍ଦ୍ଧରେ ତୁ ଥିବୁ ନିଶ୍ଚୟ । ତୋର କଲ୍ୟାଣ ବହି ପଡିବା- କୃଷ୍ଣଭକ୍ତି ପ୍ରେମରେ ବହ୍ବଳ ହୋଇ ଉଠିବା-ମୁଁ ସେତେବେଳେ ଅନୁଭବ କରୁଥିଲି । ଆଦରର ସାନ ଭାଇ ମୋର । ତୋପାଇ ମୁଁ କ'ଣ ଲେଖିବି? ତୋର ଏ କବିତା ବହିଟି ଜଗତରେ ଅମ୍ଳାନ ରହୁ-ଏହି ଶୁଭେଚ୍ଛା ଜ୍ଞାପନ କଲି । ଇତି

ଭାଇନା
ଶିବରାମ ରଥ

ଶାଶ୍ୱତ ରାଜ୍ୟରେ
ଶ୍ରୀ କୃଷ୍ଣଙ୍କର ଅନନ୍ତ ପ୍ରେମରେ ହଜି ଯାଇଥିବା ମୋର ମଝିଆ ଭାଇ ସ୍ୱ/ପଦ୍ମନାଭ ରଥଙ୍କ ସ୍ମୃତି ଉଦ୍ଦେଶ୍ୟରେ ଓ ସେହି ମହାନ୍ ଭକ୍ତଙ୍କର ଚରଣ ତଳେ ଏହା ସମର୍ପିତ ।

- ଭଉଣୀ -
**ସ୍ନେହଲତା**

# ତୁମରି ଛଡ଼ା ତୁଳସୀ

ଶ୍ୟାମ ବଂଶୀସ୍ୱନ - ମୋ ହୃଦ ବୀଣାରେ
ବାଜି ଉଠୁ ବାରମ୍ବାର ;
ନୁପୂର ଝଙ୍କାର ଗଳେ ବନହାର
ସୁରଭିତ ଏ ପ୍ରାଣର ।।୧।।

ହେ ମୁରଲୀଧର ମୋ ଶ୍ୟାମ ନାଗର
କିଂପା କର ଏତେ ରୋଷ ?
ତୁମ ବିନା ପ୍ରାଣ ରହିବ କି ବଞ୍ଚି
କିଂପା ଦିଅ ଏତେ କ୍ଲେଶ ।।୨।।

ହେ ବାଙ୍କଚାହାଣୀ ସ୍ମିତହାସ ଠାଣି
ଏ ଶରୀର ପ୍ରତି ବିନ୍ଦୁ,
ସମର୍ପିତ ଯଦି ତୁମ ପାଇଁ ପ୍ରଭୁ -
ନ ପାରେ ଲଙ୍ଘି ସେ ସିନ୍ଧୁ ।।୩।।

ତୁମରି ସେ ଛଡ଼ା ତୁଳସୀ ହୋଇଣ
ଏ ଜୀବନ ଯାଉ ଚାଲି ।
ତୁମରି ହୃଦ ସେ ରତ୍ନ ସିଂହାସନେ
ଦିଅ ଆଶ୍ରା କରେ ଅଳି ।।୪।।

ପଦ୍ମନାଭ ଦୁଃଖ ଶୁଣ ପଦ୍ମମୁଖ
ତୁମ ଚରଣେ ମୋ ଆଶ୍ରା ;
ଦୀନଜନ ଠାରେ କୃପା କର ବାରେ
କଲି ତୁମକୁ ଭରସା ।।୫।।

# ପଥର ଦେଉଳେ

ପଥର ଦେଉଳେ ପାଷାଣ ହେଲକି
ପଥର ଦେବତା ମୋର
ସଞ୍ଜ ସକାଳେ କଚାଡ଼େ ମୁଁ ମଥା
ଝରେ ଖାଲି ଲୁହ ଧାର ॥୧॥

ମୋ ଜୀବନ ପଥ ------- ସଦା କଣ୍ଟକିତ
ତୋଳି ନିଅ ପ୍ରଭୁ ମତେ
ମଝି ଦରିଆରେ କାତ ଛାଡ଼ି ଦେଇ
ଆଶ୍ରା କରିଛି ମୁଁ ତତେ ॥୨॥

ତବ ଦରଶନେ ହେ ଦେବତା ମୁଁ ଯେ -
ବସିଛି ଜାଗର ଜାଳି,
ତବ ବଂଶୀ ଧ୍ୱନି ପାଷାଣ ଭିତରୁ -
ବାଜି ଉଠୁ କରେ ଅଳି ॥୩॥

ମୋ ଆତ୍ମା ରାଇକେ ସୁରଭିତ ହେଉ
ସେ ମଧୁର ବଂଶୀ ସ୍ୱନ ।
ହେ ଦେବତା ସତେ ଦେଖା ଦେବ ମୋତେ -
ଏ ଜୀବନ ହେବ ଧନ୍ୟ ॥୪॥

ସୁଦାମା ଦାରିଦ୍ର୍ୟ ଭଞ୍ଜନ ହେ ହରି -
ଦେଲକି ମତେ ପାଶୋରି,
ଦିବାରାତି ତବ ନାମ ଜପି ଜପି -
ଏ ଜୀବନ ଯାଉ ସରି ୲ ॥୫॥

◆

# ଭକ୍ତି

ମୋହନ ହେ ମୋହନ
ମୋ ପ୍ରାଣପ୍ରିୟ ଘନଶ୍ୟାମ -
ଗୋପୀ ମନ ଭୁଲା ହେ ନଟ ନାଗର
ଶୁଣି ତବ ବଂଶୀ ସ୍ୱନ -
ଅହ ରହ ସଦା   ମରମେ ମୋହର -
ବାଜି ଉଠୁ ସେହି ନାମ ?
ମୋହନ - ହେ ମୋହନ ମୋ ପ୍ରାଣପ୍ରିୟ ଘନ ଶ୍ୟାମ ।   ॥୧॥

ଚାହେଁ ନାହିଁ ଧନ - ଚାହେ ନାହିଁ ମାନ -
ତୁମରି ଚରଣେ ହେବି ମୁଁ କି ଲୀନ,
ସେ ଲାବଣ୍ୟ ରୂପ
ଦରଶନ ପାଇଁ,
ଉଛନ୍ନ ହୁଏ ମୋ ପ୍ରାଣ -
ମୋହନ-ହେ ମୋହନ-   ॥୨॥

ଶୁଣି ପ୍ରଭୁ କୃଷ୍ଣନାମ
ଏ ଜୀବନ ହେଉ ଧନ୍ୟ ।
ତବ ପଦେ ମୋର ଧ୍ୟାନ -
ଆହେ ଯଶୋଦା ନନ୍ଦନ
ମୋହନ ହେ ମୋହନ ।   ॥୩॥

◆

# ମୁରାରି

ମୁରାରି !
ତୁମେ ମୋ ହୃଦୟ ହାରା -
ନାଥ ବିହୁନେ ମରେ -
ତବ ବିହୁନେ ଝରେ,
ମମ ନେତ୍ରୁ ଅଶ୍ରୁ ଧାରା
ମୁରାରି ।।୧।।

ତୁମେ ମୋ କୃଷ୍ଣ -
ମୁଁ ତୁମ ରାଧିକା -
ତୁମ ବିନା କେହୁ
ପରାଣୁ ଅଧିକା,
ଏ ପ୍ରାଣ ବୀଣାରେ
ବାନ୍ଧି ରଖି ପ୍ରଭୁ
ଜପିବି ଜୀବନ ସାରା
ମୁରାରି ।।୨।।

ଡାକୁଛି ଆକୁଳେ
ପୁଲକିତ ପ୍ରାଣେ
ପ୍ରେମ ମୂରତି ମୁଁ ମୀରା
ପ୍ରୀତି କୁସୁମରେ
ସଜାଇବି ନିତି
ଢ଼ାଳିଦଅ କୃପାଧାରା
ମୁରାରି - ତୁମେ ମୋ ହୃଦୟ ସାରା

# ହେ ପଦ୍ମମୁଖ

ଖପର୍ ଘରେ ପାଏନ୍ ବରଷା -
ଟପର୍ ଟପର୍ କର୍‌ସି
ମୋର୍ ଚେଁପଟର୍ ଉସ୍‌ନା ତଳେ -
ତତଲା ଲୁହ ଝରସି,
ନୁନ ବଏଲେ - ତୁନ୍ ନାଇ -
ଘର ମୋର୍ ଦର୍ ଦର୍ ଦର୍ ଗଲ୍‌ସି ? ।।୧।।

ମାଟିର୍ ଘର୍ ମାଟିନେ ମିଶ୍‌ବା
ମନ୍‌ଟା ନାଇ ବୁଝି ପାର୍‌ସି
ନୁରା ନୁରା ଲାଗେ ଘର୍‌ଟା ମୋର୍
ସତେ କାଏଁ ଉଦ୍‌ରି ଯାଏସି ।।୨।।

ତମେ କାଏଁ ପରଭୁ -
ନାଇ ବୁଝି ପାରଲ୍
ଏତେ ତୁକୁ ମୋର ଦୁଃଖ ।
ଝଡ଼ ବ୍‌ରଷାନେ ଭିଜିଗଲେ ପର୍‌ଭୁ
ଦେଖା ଦିଅ ପଦ୍ମ ମୁଖ , ।।୩।।

◆

# ଶ୍ରୀ ହରି

ହରିହେ !
ଏ କି ଅବିଚାର ମୋରେ !
ବେଦନା ଦେଇଛ - କିଂପା ମୋ ଅନ୍ତରେ
ସାନ୍ତ୍ୱନା ଦେଇନ ବାରେ ? ହରିହେ - !
ଦୁନିଆ ଦୃଷ୍ଟିରେ ହେଲି ପ୍ରଭୁ ହୀନ -
ଦୀନ ରୂପେ ହେଲି ଘେନା -
ଭାବି ନ ଥିଲି ହେ - ତୁମରି ଜଗତେ -
ପାତର ଅନ୍ତର ଚଳେ !
ହରିହେ ଏ କି ଅବିଚାର ମୋରେ? ॥୧॥

କରି ନାହିଁ ଜୀବେ ଦୟା
କୁଟୁମ୍ବେ କରିଛି ମାୟା ତଥାପି ହେ ହରି - ଆଶ୍ରା ଅଛି କରି -
ପାଇବି ଦର୍ଶନ ବାରେ ॥୨॥
ହରିହେ - ଏ କି ଅବିଚାର ମୋରେ ?

ତଥାପିତ ତୁମେ ଦୁଃଖି ଦୁଃଖ ହାରୀ
ନ ଅନାଅ ବାରେ ମୋରେ ॥୩॥

ଦୁଃଖ ପରେ ରୋଗ ଦେଲ
ଜୀବିକା ଖଣ୍ଡିକ ନେଲ,
ତଥାପି କି ପ୍ରଭୁ ମନ ନାହିଁ ପୂରି
ଆଉ କି କରିବ ପରେ ? ହରିହେ ॥୪॥

ପାର୍ଥିବ ଦୁଃଖରେ ମୁହିଁ,
ତିଳେ ହେଁ ଚିନ୍ତିତ ନାହିଁ
ଚିନ୍ତିତ କେବଳ ବିଚ୍ଛେଦେ ତୁମରି
ସୁଦୟା ହେବ କି ମୋରେ ? ହରିହେ ॥୫॥

◆

# ହେ କୃଷ୍ଣ

ହେ ଗୋବିନ୍ଦ, ହେ ମୁକୁନ୍ଦ,
ହେ ମାଧବ, ଘନ ଶ୍ୟାମ
କେଉଁ ନାମେ ତବ ପ୍ରୀତି ଜାଗଇ,
କହ ମୋତେ ସେହି ନାମ ॥୧॥

ଅନ୍ୟ ନାମ ଜାଣେ ନାହିଁ
ଅନ୍ୟ ନାମେ ପ୍ରୀତି ନାହିଁ।
ଜାଣେ ମୁଁ କେବଳ କୃଷ୍ଣ ନାମ ସାର
କୃଷ୍ଣ ନାମେ ସବୁ ପାର। ॥୨॥
କୃଷ୍ଣ ମୋହର ପ୍ରାଣ।
କୃଷ୍ଣ ମୋହର ଧ୍ୟାନ ।
କୃଷ୍ଣ ମୋର ଜୀବ ଜୀବନ
ହା କୃଷ୍ଣ, ହା କୃଷ୍ଣ ହେ ପ୍ରାଣର କୃଷ୍ଣ ॥
ମୋ ହୃଦ ସଦା ଜପଇ ! ॥୩॥

ରୋଗେ ହେଲା ନାରଖାର
ଜର୍ଜରୀତ ଏ ଶରୀର
ଲୋଡ଼ା ନାହିଁ ଆଉ ଏ ମାଟିର ଘଟ
ଯେବେ ତବ ପଦ ପାଇ ! ॥୪॥

ଅସ୍ଥିର ମୋ ଆତ୍ମାରାମ,
ବ୍ୟାକୁଳ ପରାଣ ମମ,
ଦେଖାଦିଅ ବାରେ ଘେନି ଯାଅ ହରି
ଏ ଆତ୍ମା ସଦା ଭଜଇରେ । ॥୫॥

# ମାଗୁଣି

କିଏ ସେ ଡାକୁଛି ପ୍ରଭୁ ପ୍ରଭୁ ବୋଲି,
   କେ ଡାକଇ ଭଗବାନ ।
କିଏବା ଡାକୁଛି ଦୀନନାଥ ବୋଲି
   କେ ଡାକୁଛି ପ୍ରାଣଧନ ॥
ପ୍ରଭୁ ହେ ! ପ୍ରଭୁ ହେ !!
   ମୁଁ ଡାକୁଛି କୃଷ୍ଣ ନାମ !! ॥୧॥

କିଏ ସେ ମାଗୁଛି ଧନ, ଜନ, ଯଶ
   କେ ମାଗୁଛି ବୁଦ୍ଧି ଜ୍ଞାନ ।
କିଏ ସେ ମାଗୁଛି ରୂପ ରଙ୍ଗ ଭରା
   କେ ମାଗୁଛି ସିଂହାସନ
ପ୍ରଭୁ ହେ ! ପ୍ରଭୁ ହେ !!
   ମୁଁ ମାଗୁଛି ତବ ଧ୍ୟାନ ॥୨॥

କିଏ ସେ ଦେଖୁଛି ତବ ପ୍ରେମ ମୂର୍ତ୍ତି
   କେ କହୁଛି ଗୋପୀପ୍ରାଣ ।
କିଏ ସେ ଶୁଣୁଛି ମୋହନ ମୁରଲୀ
   କେ ଗାଉଛି ତବ ଗାନ ।
ପ୍ରଭୁ ହେ ! ପ୍ରଭୁ ହେ !!
   ମୁଁ ଖୋଜୁଛି ଆତ୍ମାରାମ ॥୩॥

କିଏ ସେ ଡାକୁଛି, କିଏ ସେ ମାଗୁଛି
   କେ ଲୋଡୁଛି କେତେ ମାନ
ମାଗୁଛି କେବଳ ଏତିକି ହେ ପ୍ରଭୁ -
   ଦିଅ ତବ ଦରଶନ !!
ପ୍ରଭୁ ହେ ! ପ୍ରଭୁ ହେ !!
   ଏତିକି ମାଗୁଣି ମମ ହେ ॥୪॥

◆

# ପ୍ରୀୟ ମୋର

ପ୍ରଭୁହେ - ପ୍ରଭୁହେ -
ପ୍ରୀୟତମ ତୁମେ ମୋର !!!
ପ୍ରୀୟ ତର ପ୍ରଭୁ - ଶ୍ରେଷ୍ଠ ପ୍ରୀୟତମ
ପ୍ରିତି ରେ ଭରି ସଂସାର !!
ପ୍ରଭୁହେ - ପ୍ରୀୟତମ ତୁମେ ମୋର !! ॥୧॥

ପ୍ରୀୟ ମୋର କାହିଁ ?
ବାଟ ବଣା ହୋଇ -
ନିରାଶ ହେବାହିଁ ସାର ।
ଅନ୍ଧକାର ପଥେ
ଖୋଜୁଛି ପ୍ରୀୟଙ୍କୁ
କାହିଁ ଗଲେ ପ୍ରୀୟ ମୋର !!!
ପ୍ରଭୁହେ - ପ୍ରଭୁହେ -
ପ୍ରୀୟତମ ତୁମେ ମୋର !!! ॥୨॥



# ଶେଷ ନିବେଦନ

ମନ ମନ୍ଦିରେ ମୁଁ ସଜାଇ ରଖିଛି
 ପ୍ରେମ ମୂରତି ମୋ ଘନଶ୍ୟାମ
ପ୍ରୀତି କୁସୁମରେ ପୂଜିଅଛି ବସି
 ତିଳେ ନାହି ମୋ ବିଶ୍ରାମ ! ।।୧।।

ହୃଦ ପ୍ରସ୍ତରରେ ଅଗୁରୁ ଚନ୍ଦନ
 ଘୋରି ଅଙ୍ଗେ ଶ୍ୟାମଳିବି ।
ମନର ବାସନା ନଇବେଦ୍ୟ ରୂପେ
 ମୋ ଶ୍ୟାମରେ ସମର୍ପିବି !! ।।୨।।

ଗ୍ରହଣ କରିବ ନାହିଁକି ହେ ପ୍ରଭୁ -
 ମୋ ଆତ୍ମା ତୁଳସୀ ପତ୍ର -
ତବ ପାଦପଦ୍ମେ ସଜାଇବି ବସି
 ପବିତ୍ର ହେଉ ମୋ ଗାତ୍ର !! ।।୩।।

ତୁମେ ମୋର ଆଶା ତୁମେ ମୋ ଭରସା -
 ଏ ଶରୀର ମନ ପ୍ରାଣ ।
ତୁମରି ଚରଣେ ଆତ୍ମ ନିବେଦନ
 ଗ୍ରହଣ କରହେ ଶ୍ୟାମ !! ।।୪।।

◆



କବି : ଶ୍ରୀଯୁକ୍ତ ପଦ୍ମନାଭ ରଥ

ପରମ ପୂଜ୍ୟ ପିତୃଦେବଙ୍କ ଚରଣ କମଳେ
ବିନମ୍ର ପ୍ରଣାମ ସହ ଭକ୍ତିପ୍ଲୁତ ଶ୍ରଦ୍ଧାଞ୍ଜଳୀ ।

ଯୋଇଁ
ମୀନକେତନ ମିଶ୍ର

ଶାଶ୍ୱତ ରାଜ୍ୟର ରହିଥିବା ଅମର କବି ପରମ ଆରାଧ୍ୟ କକା
ଶ୍ରୀ ପଦ୍ମନାଭ ରଥଙ୍କ ପଦତଳେ ଭକ୍ତିପୂତ ଅର୍ଘ୍ୟ ସହ –

ଶ୍ରୀ ବିଶ୍ୱକେତନ ରଥ
ଭୁବନମୋହନ ରଥ
ମନୋଭିରାମ ରଥ

